# ସୀତାବିଳାପ ।



## ପ୍ରଥମ ଛାନ୍ଦ ।

ରାଗ—ଖଣ୍ଡିତା ।

ଅଶୋକବନେ ଜାନକୀ କରନ୍ତି ରୋଦନ । କେମନ୍ତେ ଦେଖିବି ନେତ୍ରେ ସ୍ୱାମୀଙ୍କ ବଦନ । ମନ୍ଦ କଲୁ ହେ । କର୍ମ୍ମ ବିହି ଏତେ କଷ୍ଟ ଦେଲୁ ହେ । ୧ । ସ୍ୱାମୀ ବୋଲ ନ ମାନି ମୁଁ ଅଇଲି ସଙ୍ଗରେ । ସେହି ଦୋଷୁଁ ବନ୍ଦୀ ହେଲି ଅସୁରଙ୍କ ପୁରେ । ବୁଦ୍ଧି ହୀନ ହେ । ନ ମାନିଲି ସ୍ୱାମୀଙ୍କ ବଚନ ହେ । ୨ । କୈକେୟୀ ଭୟରେ ଆମ୍ଭେ ବନକୁ ଅଇଲୁଁ । ଅଯୋଧ୍ୟାରେ ଭରତ ରାଜା ହେବାର ଶୁଣିଲୁଁ । ତଥ୍ୟବାଣୀ ହେ । ସୁମନ୍ତ ମନ୍ତ୍ରୀ ମୁଖରୁ ଶୁଣି ହେ । ୩ । ନଗ୍ରବାସୀ ତାହାଙ୍କୁ ଅନେକ କହିଲେ । କୈକେୟୀର ମନୋବାଞ୍ଛା ବିଧି ପୂର୍ଣ୍ଣ କଲା । ଭଲ ଥିଲି ସେ । ମନ୍ଥରାର ଚକ୍ର ବୋଧ ହେଲା ସେ । ବନବାସ ଦୁଃଖ କଷ୍ଟ କିଛି ନ ପାଇଲି । ଶ୍ରୀରାମ ଶ୍ରୀମୁଖ ଚାହିଁ ଦୁଃଖ ପାସୋରିଲି । ଷାରବର ହେ । କା ମୁଖ ଚାହିଁ ହୋଇବି ସ୍ଥିର ହେ । ୫ । ସାନୁଜ ଲକ୍ଷ୍ମଣ ଯାଇ ଅଇଲେ ଗୋଡ଼ାଇ । ସୁମିତ୍ରାନନ୍ଦନ ମନେ ଆନ ନ ଧରଇ । ଜଗିଥାଇ ସେ । ରାମଙ୍କୁ ବସି ଉନିଦ୍ର ହୋଇ ହେ । ୬ । ଲକ୍ଷ୍ମଣ ଗୁଣ ସୁମରି କରନ୍ତି ରୋଦନ । କେଉଁଣେ ଲୁଚ୍ଛଇ ରଖିଲ ଚନ୍ଦ୍ରମା ବଦନ । ଗୁଣ ଗୁଣି ହେ । ତୁମ୍ଭ ପାଇଁ ନେତ୍ରୁ ବହେ ପାଣି ହେ । ୭ । ଫଳ ମୂଳ ବନୁ ଆଣି ଦେଉ ହେ ଲକ୍ଷ୍ମଣ । କେମନ୍ତେ ସୁଝିବି ମୁହିଁ ତୁମ୍ଭ ଏତେ ଗୁଣ । ଉପକାର ହେ । ଯେତେ କରିଥିଲ ବନେ ମୋର ହେ ॥ ତେଜି ଦେବରେ ପାଇ ସଙ୍ଗରେ ଆମ୍ଭର । ସାବତଜନନୀ ସ୍ନେହେ ବୋଲି ନ ବିଚାରି । ସେବା କଲ ହେ । ରାତ୍ର ଦିନ ଜଗି ବସିଥିଲ ହେ । ୯ ।

କେଉଁ କାର୍ଯ୍ୟେ ବିଳମ୍ବ କରିଲ ତୁମ୍ଭେ ସାରେ । କ୍ରୋଧ ହୋଇଣ- ବୋଲନ୍ତି ସେ କୋଦଣ୍ଡ ଧରି । ଛଳନାହିଁ ହେ । ଯାହା ଆଜ୍ଞା କରିବେ ଗୋସାଇଁ ହେ । ୧୦ । ଅଯୋଧ୍ୟାରେ ଅଭିଷିକ୍ତ ହୋଇଥାନ୍ତେ ରାମ । କେଉଁ ଦୋଷେ ବିହି ତାଙ୍କୁ ହୋଇଲୁ ତୁ ବାମ । ଯୋଗନାହିଁ ଯେଣା ଏତେ ଦୁଃଖ ଦେଲେ ତ କୈକେୟୀ ଯେ । ୧୧ । ମନ୍ଥରା ବୋଲେ କୈକେୟୀ ରାଜାଙ୍କୁ କପଟେ । ସତ୍ୟ କରାଇଲେ ନୃପେ ବସାଇ ନିକଟେ । ଛନ୍ଦ କରି ଯେ । ସତ୍ୟ କଲେ ଭୁଲି ଦଣ୍ଡଧାରୀ ଯେ । ୧୨ । ଭରତ ଶତ୍ରୁଘ୍ନ ମୋର ରାଜ୍ୟକୁ ପାଳିବେ । ଚଉଦ ବରଷ ରାମ ବନବାସୀ ହେବେ । ଏହା ଶୁଣି ସେ । ମୂର୍ଚ୍ଛିତ ହୋଇଲେ ନୃପମଣି ଯେ । ୧୩ । ପିତୃସେବା ଅର୍ଥେ ବନେ ଆଇଲୁଁ ମୁହିଁ । ଭାଇ ସ୍ନେହବଶେ ସଙ୍ଗେ ଲକ୍ଷ୍ମଣ ଆସଇ ! ଲଇକ୍ଷଣ ହେ । ଭାଇ ସଙ୍ଗେ ବନକୁ ଗମନ ହେ ।। ସାବତ ଜନନୀ ସୁତ ହୋଇ ସ୍ନେହବଶ । ଆମ୍ଭର ସଙ୍ଗତ ହୋଇ ଆସେ ବନବାସ । ସ୍ନେହକରି ହେ । ବନବାସ ଦୁଃଖ ନ ବିଚାରି ହେ । ୧୪ । ବିଳାପ କରନ୍ତି ସୀତା ଲକ୍ଷ୍ମଣ ସୁମରି । ଅଯୋଧ୍ୟା ସୁଖ ଛାଡ଼ିଣ ହେଲୁ ବନଚାରୀ । ଆମ୍ଭ ସଙ୍ଗେ ହେ । ବନରେ ବଞ୍ଚିଲୁ ନାନାରଙ୍ଗେ ହେ । ୧୬ । ବେନିଭାଇ ଏକ ହୋଇ କିପରି ବଞ୍ଚିବେ । ମୋତେ ତ ନ ଦେଖି ମନେ ବ୍ୟାକୁଳ ହୋଇବେ । ମନ୍ଦ ବିହି ରେ । ବଧି କାହିଁ ଥିବେ ବେନି ଭାଇ ରେ । ୧୭ । ବିଳାପ କରନ୍ତି ସୀତା ରାମ ଗୁଣ ଗୁଣି । ମୁହିଁ ଚଣ୍ଡାଳୁଣୀ ଦେଖି କନକ ମୃଗୁଣୀ । ଇଚ୍ଛା କଲି ଯେ । ମୃଗ ମାରି ଦିଅ ମୁଁ ବୋଇଲି ଯେ । ୧୮ । ବୋଲ ନ ଲଙ୍ଘିଣ ପ୍ରଭୁ ମୃଗ ମାରି ଗଲେ । ଲକ୍ଷ୍ମଣଙ୍କୁ ଜଗାଇଣ ଶ୍ରୀରାମ ଧାଇଁଲେ । ମୃଗ ଡାକ ଯେ । ହେ ବୀର ଲକ୍ଷ୍ମଣ ମୋତେ ରଖ ହେ । ସାହା ଶବ୍ଦ ଶୁଣି ମୁହିଁ ମନେ ଭୟ କଲି । ଶୀଘ୍ର ଯାଅ ଲଇକ୍ଷଣ ବୋଲିଣ ବୋଇଲି । ସଉମିତ୍ରି ଯେ । ଧନୁଶର ଧଇଲା ଝଟତ ସେ । ଲକ୍ଷ୍ମଣ ଅନ୍ତର ଦେଖି ବଶ୍ରବାର ବର୍ଷି । ରେଖାରେ ଆଣିଣ ମୋତେ

ଏଠାରେ ରଖିଛୁ । ବନ୍ଧନକର ସେ । ଜଗାଇଛି ଲଙ୍କେଶ ଅସୁର ଯେ ॥
କେଉଁ ତପବଳେ ତାକୁ ଧରିଛି ଧରଣୀ । ଋଷିକୁଳେ ଜାତ
ହୋଇ କରେ ଶ୍ରେଷ୍ଠ ବୃତ୍ତି । ନାଶ ଯିବ ଯେ । ରାମ କାଣ୍ଡେ
ସବଂଶେ ନଷ୍ଟିବ ଯେ । ୧୨ । ସୁବର୍ଣ୍ଣ ଲଙ୍କା ଭୁବନ ହୋଇଯିବ ଶୂନ୍ୟ ।
ଏଡ଼େ ବଡ଼ ସମ୍ପଦ ତା କ୍ଷଣେ ହେବ ଚୂର୍ଣ୍ଣ । ମୁହିଁ ସତୀ
ହେ । ମୋହ କ୍ରୋଧେ ନାଶ ତା ସମ୍ପତ୍ତି ହେ । ୧୩ । ଅଯୋଧ୍ୟା
ଦେଶ ନୃପତି ନାମ ଦଶରଥ । ଅପୁତ୍ରିକ ହୋଇଥିଲେ ସୂର୍ଯ୍ୟବଂଶ
ନାଥ । ପୁତ୍ରପାଇ ହେ । ଯାଗକଲେ ମୁନିଙ୍କି ଆଣାଇଁ ହେ । ୧୪ ।
ଋଷ୍ୟଶୃଙ୍ଗ ଯାଗ କଲେ ବିଧି ଅନୁସାରେ । ଚରୁ ଅନ୍ନ ଦେଲେ ନେଇ
ନୃପତିଙ୍କ କରେ । ନୃପମଣି ଯେ । ଚରୁ ବାଣ୍ଟି ଦେଲେ ତିନିରାଣୀ
ଯେ । ୧୫ । କୌଶଲ୍ୟା ଗର୍ଭରୁ ଜାତ ହେଲେ ରଘୁନାଥ । କୈକେୟୀ
~~ଗର୍ଭୁ ଜନମ ହୋଇଲେ ଭରତ । ଶୁଭ ଦିନ ସେ । ସୁମିତ୍ରାଗର୍ଭୁ~~
ଜନ୍ମ ଲକ୍ଷ୍ମଣ ଯେ । ୧୬ । ଶତ୍ରୁଘ୍ନ ନନ୍ଦନ ହେଲେ ସୁମିତ୍ରାଙ୍କ ଠାରୁ ।
ଚାରିପୁତ୍ର ଜନ୍ମ ହେଲେ ଋଷିଙ୍କ ଚରୁରୁ । ତାହା ଶୁଣି ହେ । ଆନନ୍ଦ
ହୋଇଲେ ନୃପମଣି ହେ । ୧୭ । ବହୁତ ଉତ୍ସବ ହେଲା ଅଯୋଧ୍ୟା
ନଗରେ । ସୂର୍ଯ୍ୟବଂଶେ ରାମଜନ୍ମ ବିଖ୍ୟାତ ସଂସାରେ । ଶୁଣି ଜନେ
ହେ । ଆନନ୍ଦ ହୋଇଲେ ଋଷିମାନେ ହେ । ୧୮ । ଜନକରାଜା ନନ୍ଦିନୀ
ନାମ ମୋର ସୀତା । ଧନୁ ସ୍ୱୟମ୍ବର କରିଥିବେ ମୋ ପିତା । ମିଥିଳାରେ
ଯେ । ଲକ୍ଷେ ନୃପ ଆସିଣ ସେଠାରେ ଯେ । ୧୯ । ଶିବକୋଦଣ୍ଡକୁ
ଭାଙ୍ଗି ନ ପାରିଲେ କେହି । ସମସ୍ତ ନୃପତି ଥିଲେ ତହିଁ ରୁଣ୍ଡ ହୋଇ ।
ଧନୁ ଦେଖି ସେ । ଭୟରେ ବୁଜିଲେ ବେନି ଆଖି ସେ । ୨୦ ।
ଶିବକୋଦଣ୍ଡକୁ ଭଗ୍ନ କଲେ ରଘୁପତି । ଦେଖିଣ ଭୟ ପାଇଲେ ଲକ୍ଷେକ
ନୃପତି । ସେହି କାଳେ ହେ । ବନମାଳା ଦେଲି ରାମ ଗଳେ ହେ । ୨୧ ।
ମିଥିଳାରେ ବିଭା କଲେ ଜନକ ରାଜନ । ମୋତେ ଘେନି ରାମଚନ୍ଦ୍ର
ଅଯୋଧ୍ୟା ଗମନ । ରଘୁବୀର ସେ । ପଥରେ ଭେଟିଲେ ପର୍ଶୁଧର

ହେ । ୩୨ । ବେଳରେ ଶିବ କୋଦଣ୍ଡ ଭଗ୍ନ କଲୁ ରାମ । ଅମୃତ ଧନୁ
ଇଲେ ଜାଣିବୁ ପ୍ରକର୍ମ । ଧନୁଧର ହେ । ଏତେ ବୋଲି ବଢ଼ାଇଲେ
ର ହେ । ୩୩ । ଯମଦଗ୍ନି ସୁତ ଧନୁ ଧର କର ରାମ । ଶର ସନ୍ଧି
ଛିବାକୁ ଦେଖାଇ ବଳମ । ଉଭା ହେଲେ ଯେ । ପର୍ଶୁ ଦେଖି ଚତ୍ତେ
ୟୁ କଲେ ଜୟ । ୩୪ । ପର୍ଶୁ ବୋଲେ ଆକାଶକୁ ବନ୍ଦ ହେ ।
ହେତ । ତାଙ୍କ ବେଳେ ସ୍ୱର୍ଗକୁ ବନ୍ଧିଲେ ରଘୁପତି । ପର୍ଶୁ ଦେଖି
ହ । ପଳାଇଲେ ହୋଇ ବଡ଼ ଦୁଃଖୀ ହେ । ୩୫ । ପର୍ଶୁଧର
ାରଗଲେ ଗୃହକୁ ପଳାଇ । ଏଡ଼େ ବଡ଼ ଋଷି ହୋଇ ସହିଲେ ନ
ହି । ଗୃହକୁ ଗଲେ ଯେ । ମହାବଳବନ୍ତ ପଳାଇଲେ ଯେ । ୩୬ ।
କବଂଶ ବାର ପୃଥ୍ୱୀ ନକ୍ଷତ୍ର ଯେ କଲେ । ମହାପରାକ୍ରମୀ ପର୍ଶୁ ତୁମ୍ଭଙ୍କୁ
ାରିଲେ । ଦେଖିଥିଲି ହେ । ତୁ ଧନୁ ପ୍ରାକର୍ମ ଜାଣିଥିଲେ ହେ । ୩୭ ।
ମୁଁ ପାଟବିଣୀ ହୋଇ ଅଯୋଧ୍ୟା ଛାଡ଼ିଲି ଅନୁଜପୂର୍ବେ ଅନୁଜ ସଙ୍ଗେ
ନ୍ଧ ହେଲି । ରଘୁନାଥ ହେ । ଦୁଃଖିଜନର ଫେଡ଼ ଆଳତି ହେ । ୩୮
ତେ ପ୍ରାକର୍ମ ତୁମ୍ଭର କେଉଁଅଡ଼େ ଗଲା । ଛାର ଦାନବ ଆଣିଣ
ମୋତେ ବନ୍ଧ କଲା । ସଦ୍‌ଗୁଣନିଧି ହେ । ତୁମ୍ଭେ ପତି ଅଛ ମହାନିଧି
ହ । ୩୯ । ଏତେ ସ୍ନେହ କର ମୋତେ ପାଶୋରଣ ଦେଲ ଯେଉଁ
ପରାଧ କଲି କି ଦୋଷ ଦେଖିଲ । ମୂର୍ଚ୍ଛି ମୋତେ ହେ । ଦୟାନିଧି
ୟା ନାହିଁ ଚତ୍ତେ ହେ । ୪୦ । ମୋତେ ପାଶୋର ରହିଲ ରଘୁକୁଳସାଇ
ତକ ଜୀବନ ରଖି କସ କରିବଇଁ । ପ୍ରାଣେଶ୍ୱର ହେ । ଗଦାଧରଙ୍କୁ
ଦ୍ଧାର କର ହେ । ୪୧ ।



ଦ୍ୱିତୀୟ ଛାନ୍ଦ ।

ରାଗ—କଳହଂସ କେଦାର ।

ମହେଶ୍ୱରଙ୍କୁ ପୁଚ୍ଛାକଲେ ପାର୍ବତୀ । ଜାନକୀ କେମନ୍ତ ଧାଇ ପୌଲସ୍ତ୍ୟ
ତ ଯେ । ଲଙ୍କାନଗରେ ତାଙ୍କୁ ଦେଖିଲେ କେହେ । ଶୁଣି ଶଙ୍କର

ତହୁଁ ଭାଷି ବଚନେ ଯେ । ୨ । ପରମା ଲକ୍ଷ୍ମୀରୂପ ଜନକ ଜେମା । ପରମବ୍ରହ୍ମ ରଘୁନାଥଙ୍କ ବାମା ଯେ । ଯେତନଣ ଲଙ୍କନାଥ ହରଷ ମନେ । ରଖିଲା ତାଙ୍କୁ ନେଇ ଅଶୋକବନେ ଯେ । ୨ । ପଶ୍ଚିରଇ ତାହାଙ୍କୁ ବଂଶନୟନ । ଏଣୀନୟନା କେତେ କରୁ ରୋଦନ ଗୋ ରୋଦନ ତେଜ ରତିମୋହନୀ ରାମା । ଲଙ୍କାକୁ ସୁରପୁର ନୁହେ ଉପମା ଗୋ । ୩ । ତିନିଭୁବନୁ ବାଛି ଆଣିଛି କନ୍ୟା । ବଶ୍ୟାତ ହୋଇଅଛି ତେଣୁ ମୋ ବାନା ଗୋ । ସମସ୍ତେ ଅଧୀନରେ ଅଛନ୍ତି ମୋର । ଖଟୁଛନ୍ତି ଗନ୍ଧର୍ବ ଆଦି ଅମର ଗୋ । ୪ । ତାଙ୍କର ପ୍ରିୟବତୀ ନାଗସ୍ତ୍ରୀମାନେ । ରହିଅଛନ୍ତି ସର୍ବେ ମୋହ ସଦନେ ଗୋ । ମୋହର ପାଟରାଣୀ ମୟନନ୍ଦନୀ । ନବଯୌବନା ସେ ବାରଣ ଗମନୀ ଗୋ । ୫ । ସେ ସର୍ବେ ତୋର ପାଦେ ସେବା କରିବେ । ସକଳେ ତୋର ଆଜ୍ଞା ପ୍ରତିପାଳିବେ ଗୋ । ଦେଖ କନକ ଲଙ୍କା କନକ ଅଟ୍ଟ । ଚନ୍ଦ୍ରବଦନେ ହୁଅ ମୋହର ସଙ୍ଗୀ ଗୋ । ୬ । ବାସୁକି ଦନ୍ତୁରୀ ଆସି ଅଟଇ ମୋର । ଦିଗପାଳ ଅଟନ୍ତି ମୋର କିଙ୍କର ଗୋ । ଭାଇ ଯେ କୁମ୍ଭକର୍ଣ୍ଣ ମହାବଳିଷ୍ଠ । ପୁଅ ବାନ୍ଧିଆଣିଲା ସୁରଙ୍କ ଶ୍ରେଷ୍ଠ ଗୋ । ୭ । ଏପର ସମ୍ପତ୍ତି ମୋର ଅଟେ ସମ୍ପଦ । ମୋତେ କି ସର ହେବ ଶ୍ରୀରାମଚନ୍ଦ୍ର ଗୋ । ବନରେ ତାଙ୍କ ସଙ୍ଗେ ଥିଲୁ ଗୋ ଦୁଃଖେ । ଏବେ ଏ ଲଙ୍କେ ରହ ଅତ୍ୟନ୍ତ ସୁଖେ ଗୋ । ୮ । ରାବଣ ବାଣୀ ଶୁଣି ବୋଲନ୍ତି ସତୀ । ରାମଙ୍କ ବିନୁ ଅନ୍ୟ ନ ବଳେ ମତି ହେ । ପରନାରୀକି ଏହା କହୁ କେମନ୍ତେ । ଗଦାଧର ସାହୁ ଯେ ଭାଷଇ ଗୀତେ ହେ । ୯ ।

## ତୃତୀୟ ଛାନ୍ଦ ।

ରାଗ—ଆହରୀ ।

ତହୁଁ ଜନକସୁତା । ହୋଇ ଅତି ଦୁଃଖିତା । ବୋଲନ୍ତି ରେ ମନ୍ଦ ବୁଦ୍ଧି ମୁଁ ପତିବ୍ରତା । ୧ । ଧର୍ମ ଯେତେବେଳେ ସତ । ନଷ୍ଟ ହୋଇବୁ

ହତ ରାମ ଶରରେ ଛଡ଼ିବ ତୋହର ମାଥ । ୨ । ସୀତା ବଚନ ଶୁଣି । କ୍ରୋଧେ ସେ ବଂଶପାଣି । ସହସ୍ରେକ ରାକ୍ଷସୀଙ୍କି ଜଗାଇ ପୁଣି । ୩ ଯେସନ୍ତେ ଜାନକୀ ମୋତେ । ଭଜନ୍ତିବଇଁ ନରତେ । ସେ ଉପାୟକର କହିଗଲା ତ୍ୱରିତେ । ୪ । ତହୁଁ ରାକ୍ଷସୀଗଣ । ସୀତା ପାଶେ ବେଢ଼ିଣ । ନାନା କଷ୍ଟ କହୁଥାନ୍ତି ଯେ ଗରଜଣ । ୫ । ତହୁଁ ରାମଘରଣୀ । ଶିରେ ଦେଇଣ ପାଣି । ବଦନକୁ ପୋତି ବସିଥାନ୍ତି ଧରଣୀ । ୬ । ସହୁଁ ମୋହର ବର । ପ୍ରଭୁ କୋଦଣ୍ଡ ଧର । ତାଙ୍କ ସଙ୍ଗୁ ବହି ମୋତେ କଲା ଅନ୍ତର । ୭ । ମାତା କୈକେୟୀ ମନ୍ଦ । ଯୋଗୁଁ ହେଲା ପ୍ରମାଦ । କଣ୍ଟକେ ବନେ ପଶିଲେ ଶ୍ରୀରାମଚନ୍ଦ୍ର । ୮ । ଘୋର ରାବଣ ଦୁଷ୍ଟ । ଅଟେ ଏଡ଼େ ପାପିଷ୍ଠ । ମୋତେ ଆଣିଛି ନଷ୍ଟେ ହୋଇବ ନଷ୍ଟ । ୯ । କ୍ରୋଧେ ସୀତା ନୟନ । ଦିଶେ ଅଗ୍ନି ସମାନ । ସ୍ୱର୍ଗେ ଥାଇ ଦେଖିଲେ ତା ଚତୁରାନନ । ୧୦ । ରାଇ ପାକଶାସନ ବ୍ରହ୍ମା କହନ୍ତି ବଚନ । ଅଗ୍ନିର ସଦୃଶ ଦିଶେ ସୀତାଲୋଚନ । ୧୧ । ଯେବେ ରୋଷ ଦୃଷ୍ଟିରେ । ଚାହିଁ ଦେବେ ସେ ବାରେ । ତିନିପୁର ଭସ୍ମ କରି ପାରିବେ ଖରେ । ୧୨ । ସତୀ ଅଶୋକବନେ । ଛନ୍ତି ଦୁଃଖିତ ମନେ । ଅମୃତ ଘେନିଣ ତୁମ୍ଭେ ଯାଅ ବହନେ । ୧୩ । ଶୁଣି ବ୍ରହ୍ମା ଉତ୍ତର । ଇନ୍ଦ୍ର ତହୁଁ ସତ୍ୱର । ସୁଧା ଘେନି ବସୁଧାକୁ ହେଲେ ବାହାର । ୧୪ । ଦେବଗଣ ସଙ୍ଗରେ । ବଇଦେହୀ ପାଶରେ । ପହଞ୍ଚି ଦେଲେ ପ୍ରଣମିଲେ ପୟରେ । ୧୫ । ଦେବେ ବୋଲନ୍ତି ମାତ । ତୁମ୍ଭେ ଭୁଞ୍ଜ ଅମୃତ । କ୍ଷୁଧା ଶାନ୍ତି ହେବ ଦଶ ମାସ ପର୍ଯ୍ୟନ୍ତ । ୧୬ । ସୀତା ଅମୃତ ନେଲେ । ସୁଖେ ଭୋଜନ କଲେ । ଅସୁରୀଏ ତ ଏହା ନ ଜାଣି ପାରିଲେ । ୧୭ । ଦେବେ ନମି ବହନ । ଗଲେ ସ୍ୱର୍ଗଭୁବନ । ଗଦାଧର ସାହୁ ଗୀତ କଲା ରଚନା । ୧୮ ।



ସମାପ୍ତ ।

ଶ୍ରୀ ଅଭିନ୍ନଚନ୍ଦ୍ର ରାଓଙ୍କର କଟକ ନାରାୟଣ ପ୍ରେସରେ ମୁଦ୍ରିତ । ୧୯୨୬

# ବିଜ୍ଞାପନ ।



ନିମ୍ନଲିଖିତ ପୁସ୍ତକମାନ କଟକ ଆଲମଗଞ୍ଜବଜାର
ଶ୍ରୀ ଗଦାଧର ସାହୁ ଓ କୃଷ୍ଣଚନ୍ଦ୍ର ସାହୁଙ୍କ ପାଖରେ ତଲ୍ଲାସ କଲେ
ଅନାୟାସେ ପ୍ରାପ୍ତ ହେବ ।

ତପସିଲ ।

| | | | |
|---|---|---|---|
| ସୀତାବିଳାପ | ଟ ୦ (୯ | ଗରୁଡ଼ଗୀତା | ଟ ୦ ୵ |
| ରାମବିଳାପ | ଟ ୦ (୯ | ବରାହପ୍ରଶ୍ନ | ଟ ୦ (୯ |
| ମଙ୍ଗଳା ଶାରଳାସ୍ତୁତି | ଟ ୦ (୬ | ଦଅଭଭଜନ ରହସ୍ୟ | ଟ ୦ /୬ |
| ଅବତରାଣ ୩୪ଶା | ଟ ୦ (୯ | ପଦ୍ମାବତୀ [illegible] | ଟ ୦ ୵ |
| କଳିଯୁଗ ୩୪ଶା | ଟ ୦ (୯ | ସବାଖିଆ ପୁଅର୍ଙ୍ଗ | ଟ ୦ ୵ |
| ବା ଠଭଡଶା | ଟ ୦ (୬ | ରୁକ୍ମଣୀଗତ ରାଜା ଓ | |
| ନଳ ନୀଳ ଚରିତ୍ର | ଟ ୦ / | ମୋହନୀକନ୍ୟା ପୁଅର୍ଙ୍ଗ | ଟ ୦ ୵ |
| ନିତ୍ୟକର୍ମ ଓ ଟୀକା | | ଖୁଲଣାଦେଈ କାନ୍ଦ | ଟ ୦ / |
| ଭାଗବତ | ଟ ୦ / | ଦାଇକା ମାଳିକା | ଟ ୦ / |
| ନାମସଂକୀର୍ତ୍ତନ | ଟ ୦ /୬ | ଗୃଣକ୍ୟଶ୍ଳୋକ | ଟ ୦ ୵ |
| ନାମକୀର୍ତ୍ତନ | ଟ ୦ /୩ | ଅଷ୍ଟଗୁଜରୀ | ଟ ୦ / |

କେହି ଗ୍ରାହକ ଅଧିକ ଟଙ୍କାରେ ପୁସ୍ତକ ନେଲେ ଉଚିତ
କମିସନ ମଧ୍ୟ ଦିଆଯାଏ ।

ଶ୍ରୀ କୃଷ୍ଣଚନ୍ଦ୍ର ସାହୁ, ବୁକ୍ ସେଲର୍ ।

ଏଠାରେ ମଧ୍ୟ ମକରଧ୍ୱଜ ମିଳେ ତୋ ୧ ଲାକୁ ଟ ୪(

ଆଲମଗଞ୍ଜବଜାର
ପୋଃ ଅଃ ବକସିବଜାର, କଟକ



ଶ୍ରୀ ଗଦାଧର ସାହୁ
ବୁକ୍‌ସେଲର ।